## ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି :

# ଦାସତ୍ୱର ବେଡ଼ିରେ ଭାରତ




ସୌରୀବଂଧୁ କର

*ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି :*

# ଦାସତ୍ୱର ବେଡ଼ିରେ ଭାରତ

ବହୁଲୋକ ଆଦୌ ଦେଖି ନ ଥିବା, କେତେକ ଅତ୍ୟନ୍ତ ଉତ୍ସାହିତ ହେବା ଏବଂ ଅନ୍ୟମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ ହେଉଥିବା, ଅତ୍ୟନ୍ତ ନିରବ ଭାବରେ ପରିବର୍ତ୍ତନ ହୋଇ ଭାରତୀୟ ଅର୍ଥନୀତି ନୂତନ କଳେବର ଧାରଣ କରୁଛି । ଏହା ଘଟୁଛି 'ସଂଗଠିତ ଖୁଚୁରା' କିମ୍ବା 'ଆଧୁନିକ ଖୁଚୁରା' ବ୍ୟବସାୟର ପ୍ରବେଶ ଓ ବିସ୍ତାର ଯୋଗୁଁ ଯାହାକୁ କୁହାଯିବ 'କରପୋରେଟ୍ ବ୍ୟବସାୟ'।

ଏହା ସପକ୍ଷରେ ଅନେକ ଯୁକ୍ତି ଉପସ୍ଥାପିତ କରାଯାଉଛି । କିନ୍ତୁ ଏହି ସପକ୍ଷବାଦୀ ଚିତ୍ରକୁ ଅତ୍ୟନ୍ତ ଭ୍ରମାତ୍ମକ ଭାବରେ ଚିତ୍ରିତ କରି ଜନଗଣଙ୍କ ସମ୍ମୁଖରେ ଥୋଇ ଦିଆଯାଉଛି । ଏହାଦ୍ୱାରା ଦେଖାଦେବ କୃଷିକ୍ଷେତ୍ରର ସମସ୍ୟା, ପରିବେଶ ନଷ୍ଟ, ଜମିର ଉତ୍ପାଦନ କ୍ଷମତା ହ୍ରାସ, ସହରାଞ୍ଚଳରେ ବେକାରୀ ବୃଦ୍ଧି, ଦରଦାମ୍‌ର ବେନିୟନ୍ତ୍ରଣ ଏବଂ ମୌଳିକ ସମ୍ପଦା ପାଇବାର ଅପହଞ୍ଚ ଦୂରତା ।

କେନ୍ଦ୍ର ସରକାର ମଲ୍ଟିବ୍ରାଣ୍ଡ ଖୁଚୁରା ବ୍ୟବସାୟରେ ୫୧% ବିଦେଶୀ ପୁଞ୍ଜି ବିନିଯୋଗ (FDI) ଓ ଖୁଚୁରା ବ୍ୟବସାୟରେ ଶତପ୍ରତିଶତ ବିଦେଶୀ ପୁଞ୍ଜି ବିନିଯୋଗ କରିବା ପାଇଁ ଗତ ୨୪ ନଭେମ୍ବର ୨୦୧୨ରେ କ୍ୟାବିନେଟ୍‌ରେ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏ ସମ୍ପର୍କରେ କୌଣସି ରାଜନୈତିକ ଦଳ ବା ଏଥିରେ ସମ୍ପୃକ୍ତ ସଂଗଠନମାନଙ୍କ ସହିତ ଆଲୋଚନା କରିନାହାନ୍ତି । ଦୀର୍ଘ ୧୫ ବର୍ଷ ଧରି ଏହି ନିଷ୍ପତ୍ତି ଝୁଲି ରହିଥିବା ବେଳେ ଏ ସମ୍ପର୍କରେ ସରକାର ସଂସଦରେ ମଧ୍ୟ ଆଲୋଚନା କରିନାହାନ୍ତି । ୧୯୯୬ ମସିହାରେ କ୍ୟାସ୍ ଓ କ୍ୟାରି ବ୍ୟବସାୟରେ (Cash and Carry Trade) ରେ ଶତପ୍ରତିଶତ ବିଦେଶୀ ପୁଞ୍ଜି ବିନିଯୋଗର ଅନୁମତି ପ୍ରଦାନ କରିଥିଲେ ।

ଏହା ପରେ ଏନ୍.କେ. ସିଂହ କମିଟି ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗ ସମ୍ପର୍କରେ ୨୦୦୨ ମସିହାରେ ମତ ଦେଇଥିଲେ ଯେ ଏହା ଉପରେ ନିଷେଧାଦେଶ ଅବ୍ୟାହତ ରହୁ ଯାହା ଫଳରେ ଦଶମ ପଞ୍ଚବାର୍ଷିକ ଯୋଜନାରେ ଏହା ସ୍ଥାନ ପାଇଲା ନାହିଁ ।

୨୦୦୩ ମସିହାରେ ଜର୍ମାନ ସୁପରମାର୍କେଟ ଗୋଷ୍ଠୀ ମେଟ୍ରୋ ପ୍ରଥମେ ବାଙ୍ଗାଲୋରଠାରେ 'କ୍ୟାସ୍ ଆଣ୍ଡ କ୍ୟାରି' ପାଇକାରୀ ବିକ୍ରେତା ଭାବେ ପ୍ରବେଶ କଲା । ୨୦୦୬ ମସିହାରେ ୫୧% ବିଦେଶୀ ପୁଞ୍ଜି ଏସ୍‌ବିରାଟିରେ ଅନୁମତି ପ୍ରଦାନ କରାଗଲା । ୨୦୦୭ ମସିହା ପରଠାରୁ ସମସ୍ତ କ୍ୟାସ ଏବଂ କ୍ୟାରି ପାଇକାରୀ ସଂସ୍ଥା ଯଥା- ୱାଲମାର୍ଟ, ମେଟ୍ରୋ ଏବଂ କ୍ୟାରିଫୋର ସେମାନଙ୍କର ଦୋକାନ ଭାରତରେ ଖୋଲିଲେ । ସେମାନେ ବହୁଗୁଡ଼ିଏ ଦୋକାନ ବିଭିନ୍ନ ସ୍ଥାନରେ ଖୋଲିଲେ । ଏହାର ସଂଖ୍ୟା ୨ଟିରୁ ଆରମ୍ଭ ହୋଇ ୧୪ ପର୍ଯ୍ୟନ୍ତ ବ୍ୟାପ୍ତ । କାରଣ ଭାରତୀ-ୱାଲମାର୍ଟ ୧୪ଟି ଦୋକାନ ଖୋଲିଲା ।

ରିଲାଏନ୍‌ସ ଖୁଚୁରା ଦୋକାନ ପାଇକାରୀ ବ୍ୟବସାୟ କ୍ଷେତ୍ରରେ ପ୍ରବେଶ କଲା ଏବଂ ଏହାର ଗୋଟିଏ ପ୍ରତିଷ୍ଠାନ ଖୋଲିଲା ଅହମଦାବାଦରେ । ଏପରିକି ଭାରତର ଦେଶୀ କମ୍ପାନୀମାନେ ବିଦେଶୀ କମ୍ପାନୀ ଠାରୁ ଲାଇସେନ୍ସ/ଫ୍ରାଞ୍ଚାଇଜ୍ ପ୍ରାପ୍ତ ହୋଇ ଭାରତ ବଜାରରେ ପ୍ରବେଶ କଲେ । ଏହାର ଉଦାହରଣ ହେଉଛି ସ୍ପାର (ବିଶ୍ୱସ୍ତରୀୟ ସୁପରବଜାର ଯାହାର ୩୩ ଗୋଟି ରାଷ୍ଟ୍ରରେ ୧୨୦୦୦ ପ୍ରତିଷ୍ଠାନ ରହିଛି ଏବଂ ଦୁବାଇରେ ଥିବା ଲ୍ୟାଣ୍ଡମାର୍କ ଗୋଷ୍ଠୀର ମାକ୍ସ ହାଇପର ମାର୍କେଟ ଭାରତର "ଇମେଜସ୍ ରିଟେଲ" ନାମରେ ବ୍ୟବସାୟ କରୁଛି ।

ଏହି ବ୍ୟବସ୍ଥା ଅନୁସାରେ, ଜଣେ ଦେଶୀ ବ୍ୟବସାୟୀ ବିଶ୍ୱସ୍ତରୀୟ ବ୍ୟବସାୟୀଠାରୁ ତା'ର ବ୍ରାଣ୍ଡକୁ ଲାଇସେନ୍ସ / ଫ୍ରାଞ୍ଚାଇଜ୍ ମାଧ୍ୟମରେ କିଣି ଦେଶରେ ବ୍ୟବସାୟ କଲେ । ଏଥିରେ ବିଦେଶୀ ପୁଞ୍ଜି ବିନିଯୋଗ ହୁଏ ନାହିଁ ।

ମଲ୍ଟି ବ୍ରାଣ୍ଡ ଖୁଚୁରା ବ୍ୟସାୟରେ ୫୧% ବିଦେଶୀ ପୁଞ୍ଜି ଯେଉଁମାନେ ବିନିଯୋଗ କରିବେ ସେ ସମ୍ପର୍କରେ ଯେଉଁ ସର୍ତ୍ତ ରହିଛି, ସେଥିରେ ଅଛି ସର୍ବନିମ୍ନ ବିନିଯୋଗ ହେଉଛି ୧୦୦ ନିୟୁତ ଡଲାର, ସେଥିରୁ ୫୦% ହେଉଛି ଭିତ୍ତିଭୂମି ସୃଷ୍ଟି ୩୦% ଅତିକ୍ଷୁଦ୍ର, କ୍ଷୁଦ୍ର ଓ ମଧ୍ୟମ ବ୍ୟବସାୟ ପ୍ରତିଷ୍ଠାନରୁ ମାଲ୍ ସଂଗ୍ରହ ଏବଂ

କୃଷିଜାତ ପଦାର୍ଥ ସଂଗ୍ରହରେ ସରକାରୀ ଅଗ୍ରାଧିକାର । ମଲ୍ଟିବ୍ରାଣ୍ଡ ଖୁଚୁରା ବ୍ୟବସାୟରେ ସମ୍ପୃକ୍ତ ବ୍ୟବସାୟୀମାନେ ପଚିସଢ଼ି ଯିବା ଯଥା- ଫଳ ଓ ପରିବା ଇତ୍ୟାଦି ବିକ୍ରୀ କରି ପାରିବେ ନାହିଁ କାରଣ ତାହା ବ୍ରାଣ୍ଡେଡ ନୁହେଁ । ଯେଉଁ ସହରର ଲୋକସଂଖ୍ୟା ୧ନିୟୁତ ଅର୍ଥାତ୍ ୧୦ଲକ୍ଷ ସେହିପରି ସହରମାନଙ୍କରେ ମଲ୍ଟିବ୍ରାଣ୍ଡ ବ୍ୟବସାୟ ପାଇଁ ଅନୁମତି ମିଳିବ । ଭାରତରେ ଏପରି ସହରର ସଂଖ୍ୟା ୫୩ ।

ଏ ପରିପ୍ରେକ୍ଷୀରେ ଆମମାନଙ୍କୁ ଖାଦ୍ୟର ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗର ପ୍ରଭାବ କ'ଣ ହେବ, ତାହା ବିଚାର କରିବାକୁ ହେବ । କାରଣ ଖାଦ୍ୟପଦାର୍ଥ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗ ହେଲେ ଏହା କୃଷକମାନଙ୍କ ଉପରେ, ମାଲ ଯୋଗାଣ ଦକ୍ଷତା ଉପରେ ଏବଂ ନିଯୁକ୍ତି ସୃଷ୍ଟି ଉପରେ କି ପ୍ରକାର ପ୍ରଭାବ ପକାଇବ, ତାହା ବିଚାର ଯୋଗ୍ୟ ।

ଖୁଚୁରା ବ୍ୟବସାୟରେ ଯଦି ବିଦେଶୀ ପୁଞ୍ଜି ବିନିଯୋଗ କରାଯାଏ, ତେବେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ମନକୁ ଆସେ ।

୧. ଏହା କ'ଣ ବାସ୍ତବରେ କ୍ଷୁଦ୍ରଚାଷୀ ମାନଙ୍କୁ ଯେଉଁମାନେ ସମସ୍ତ କୃଷି କାର୍ଯ୍ୟର ୮୫% ସେମାନଙ୍କୁ ସାହାଯ୍ୟକାରୀ ହେବ ?

୨. ଏହା କ'ଣ ଖାଦ୍ୟଦ୍ରବ୍ୟ ଯୋଗାଣର ଦକ୍ଷତାକୁ ବୃଦ୍ଧି କରିବ, ଯାହା ଫଳରେ ଭାରତରେ ଦେଖା ଦେଇଥିବା ନିମ୍ନତମ ଖାଦ୍ୟ ମୁଦ୍ରାସ୍ଫୀତିକୁ ରୋକି ପାରିବ ?

୩. ଏହା କିପରି ଭାବେ ପାରମ୍ପରିକ ଖାଦ୍ୟଦ୍ରବ୍ୟ ବିକ୍ରୀ କରୁଥିବା ଖୁଚୁରା ବ୍ୟବସାୟୀଙ୍କର ଜୀବନଧାରଣର ମାନକୁ ପ୍ରଭାବିତ କରିବ ?

ଏହି ପ୍ରଶ୍ନ ଗୁଡ଼ିକୁ ପରୀକ୍ଷା କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଏହି ନିଷ୍ପତ୍ତି ଘୋଷଣା ହେବା ପରେ କେନ୍ଦ୍ରସରକାରଙ୍କର ବାଣିଜ୍ୟ ଓ ଉଦ୍ୟୋଗ ମନ୍ତ୍ରାଳୟ ସମସ୍ତ ରାଷ୍ଟ୍ରୀୟ ଖବରକାଗଜରେ ଏକ ପୁରା ପୃଷ୍ଠ ବିଜ୍ଞାପନ ଛାପି ଘୋଷଣା କଲେ ଯେ ଏହି ନିଷ୍ପତ୍ତି ଫଳରେ କୃଷକ ଓ ଉପଭୋକ୍ତା ଲାଭ ପାଇବେ ଏବଂ ନିଯୁକ୍ତି ବୃଦ୍ଧି ହେବ ।

ଏହି ବିଜ୍ଞାପନରେ କୁହାଗଲା ଯେ କୃଷିଜାତ ଦ୍ରବ୍ୟ କ୍ଷେତ୍ରରେ ୧କୋଟି

ନିଯୁକ୍ତି ସୃଷ୍ଟିହେବ କିନ୍ତୁ ଏହା ପାରମ୍ପରିକ ଖୁଚୁରା କ୍ଷେତ୍ରକୁ ପ୍ରଭାବିତ କରିବ ନାହିଁ, ଏ ସମ୍ପର୍କରେ କିଛି ଉଲ୍ଲେଖ କଲା ନାହିଁ । ଏହି ବିଜ୍ଞାପନ ବୈଷୟିକ ଓ କମ୍ପୁଟର ବିପ୍ଳବ ପରେ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ନୀତି ମାଧ୍ୟମରେ ଅନ୍ୟ ଏକ ବିପ୍ଳବ ଆଣିବ ବୋଲି କୁହାଗଲା । ଏହି ବିଜ୍ଞାପନ କଥାକଳ୍ପ (ମିଥ୍) ସୃଷ୍ଟି କରିଛି ଏବଂ ବାସ୍ତବ ରୂପ ପ୍ରକାଶ କରିଛି କିନ୍ତୁ ଏହା କେତେ ବାସ୍ତବ ଓ କିପରି ସମ୍ଭବ ହେବ ସେ ସମ୍ପର୍କରେ କୌଣସି ତଥ୍ୟ ଆଧାରିତ ପ୍ରମାଣ ନାହିଁ ।

ଆମ ଦେଶରେ ଖୁଚୁରା ବ୍ୟବସାୟରେ ୧.୨ କୋଟି ପ୍ରତିଷ୍ଠାନ ରହିଛି ଏବଂ ବିଦେଶୀ ପୁଞ୍ଜି ଖୁଚୁରା ବ୍ୟବସାୟରେ ମୁଦ୍ରାସ୍ଫୀତି ପରି ବ୍ୟାପିବ । ଏ ସମ୍ପର୍କରେ ବ୍ୟାପକ ଆଲୋଚନା ହେବା ଆବଶ୍ୟକ ।

**କ୍ଷୁଦ୍ରଚାଷୀ ମାନଙ୍କ ଉପରେ ଏହାର ପ୍ରଭାବ :**

ଚାଷୀମାନଙ୍କର ସ୍ୱାର୍ଥର । ସୁରକ୍ଷା ପାଇଁ ଏଥିରେ କୌଣସି ବ୍ୟବସ୍ଥା ନାହିଁ । କେବଳ ଯେଉଁ ବ୍ୟବସ୍ଥା ରହିଛି, ତାହା ହେଉଛି ଅତିକ୍ଷୁଦ୍ର, କ୍ଷୁଦ୍ର ଓ ମଧ୍ୟମ ଧରଣର ଚାଷୀମାନଙ୍କ ଠାରୁ ୩୦% ସଂଗ୍ରହ କରାଯିବ କିନ୍ତୁ ବିଶ୍ୱ ବାଣିଜ୍ୟ ସଂଗଠନ ନିୟମ ଅନୁସାରେ ବାଣିଜ୍ୟ ସମ୍ପର୍କିତ ପୁଞ୍ଜି ବ୍ୟବସ୍ଥାରେ ଏପରି ବ୍ୟବସ୍ଥା ନ ଥିବାରୁ ଏହି ବ୍ୟବସ୍ଥା ଭାରତକୁ କିପରି ସୁରକ୍ଷା ଦେବ କାରଣ ଏହା ଜାତୀୟ ଚୁକ୍ତିର ଖିଲାପ କରିବ।

ଅନ୍ୟ ଏକ ଯୁକ୍ତି କରାଯାଉଛି ଯେ ଏହା କୃଷିଜାତ ଦ୍ରବ୍ୟ ନଷ୍ଟ ହେବାରୁ ରକ୍ଷା କରିବ । 'ନଷ୍ଟ ହେବା' ସମ୍ପର୍କରେ ଯୁକ୍ତିକୁ ବଢ଼େଇକରି କୁହାଯାଉଛି। ବାସ୍ତବରେ ସମ୍ପୂର୍ଣ୍ଣ ନଷ୍ଟ କିଛି ହେଉନାହିଁ । କାରଣ ବଜାରରେ ବିକ୍ରୀ ହେବାବେଳେ ତାହା ବିଭିନ୍ନ ଗ୍ରେଡ଼ରେ ବିକ୍ରୀ ହେଉଛି ଫଳରେ କେତେକ ଦ୍ରବ୍ୟର ମୂଲ୍ୟ କମ୍ ହେବାବେଳେ ଅନ୍ୟ କେତେକର ବେଶୀ ହେଉଛି । ବାସ୍ତବରେ କହିଲେ, କୃଷିକ୍ଷେତ୍ରର ଖୁଚୁରା ବ୍ୟବସାୟରେ ଲିପ୍ତ ଗୋଟିଏ କର୍‌ପୋରେଟ୍ ନଷ୍ଟ ହେଉଥିବା ବିଲାତି ବାଇଗଣର ପ୍ରକ୍ରିୟାକରଣ କରି ତାହାର ପେଷ୍ଟକୁ ସୁପର ମାର୍କେଟ ଓ ଆଞ୍ଚଳିକ ବଜାରରେ ବିକ୍ରୀ କରୁଛି । ଆଳୁ ଓ ପିଆଜ ପରି ପଚିସଢ଼ି ଯିବା ପଦାର୍ଥର ଅନୁପାତ ମାତ୍ର ୧୦% ଏବଂ ବନ୍ଧାକୋବି ଓ ଫୁଲକୋବିର ଅନୁପାତ ୨୦% । ତେଣୁ ୧୦%ରୁ ୨୦% ପରିବା ଆମଦାନୀ ପରେ ନଷ୍ଟ ହୋଇଥାଏ କାରଣ ଏହାର

ରକ୍ଷଣାବେକ୍ଷଣାରେ ସେତେ ଧ୍ୟାନ ଦିଆଯାଇ ନ ଥାଏ । ଯଦି ଘରୋଇ ସତେଜ ଖାଦ୍ୟ ସୁପରବଜାର ଓ ବିଶ୍ୱସ୍ତରୀୟ ସୁପରବଜାର ସମ୍ପର୍କରେ ଅନୁଧ୍ୟାନ କରିବା ତେବେ ବିଦେଶୀ ଖୁଚୁରା ବ୍ୟବସାୟୀଙ୍କର ଘରୋଇ ବଜାରରେ ପ୍ରବେଶ ଉତ୍ପାଦକକାରୀର ଉପଭୋକ୍ତା ଦେଉଥିବା ଟଙ୍କାର ଅଂଶରେ କୌଣସି ପ୍ରଭାବ ପଡ଼ିବ ନାହିଁ । ଯେଉଁ ପ୍ରଭାବ ପଡୁଛି ତାହା ହେଉଛି ଉତ୍ପାଦନକାରୀର ବଜାର ଅଂଶ ହ୍ରାସ କାରଣ ସୁପରମାର୍କେଟର ଉତ୍ପାଦିତ ଦ୍ରବ୍ୟ ଅଞ୍ଚଳରେ ସଂଗ୍ରହ କେନ୍ଦ୍ର ରହିଛି । ସୁପରମାର୍କେଟ ସେମାନଙ୍କ ମନୋନୀତ କୃଷକମାନଙ୍କ ଠାରୁ ସଂଗ୍ରହ କରନ୍ତି ଯଦିଓ ସବୁବେଳେ ସେମାନଙ୍କ ଠାରୁ କିଣିବା ପାଇଁ ସେମାନେ ପ୍ରତିଶ୍ରୁତିବଦ୍ଧ ନୁହନ୍ତି । କାରଣ ସେମାନେ ଅନ୍ୟ ଉତ୍ପାଦନକାରୀ ମାନଙ୍କର ରୋଷର ଶୀକାର ହେବାକୁ ଚାହାନ୍ତି ନାହିଁ । ତେଣୁ ସୁପରମାର୍କେଟ ଗୋଷ୍ଠୀମାନଙ୍କର ଉତ୍ପାଦନକାରୀ ମାନଙ୍କ ସହିତ ଭାରତର କୃଷକମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ଏବଂ ବିତରଣ (Supply) ବ୍ୟବସ୍ଥା ସେତେ ଦୃଢ଼ ନୁହେଁ । ଏ ପର୍ଯ୍ୟନ୍ତ କୌଣସି ଘରୋଇ ଖୁଚୁରା ବ୍ୟବସାୟୀ କିମ୍ବା ପାଇକାରୀ ବ୍ୟବସାୟୀ ସେମାନଙ୍କର ଦ୍ରବ୍ୟ ସଂଗ୍ରହ ପାଇଁ ସେପରି କିଛି ଆଗତୁରା ପୁଞ୍ଜି ବିନିଯୋଗ କରି ନାହାନ୍ତି ବରଂ କେବଳ କ୍ଷୁଦ୍ର ସଂଗ୍ରହ କେନ୍ଦ୍ର ବିଭିନ୍ନ ଅଞ୍ଚଳରେ ସ୍ଥାପନ କରିଛନ୍ତି । ସେମାନେ କେବଳ କେତେଗୁଡ଼ିଏ ଷ୍ଟୋର ଖୋଲି ବଜାରକୁ ଅକ୍ତିଆର କରି ଯୋଗାଣ କରିବାର ବ୍ୟବସ୍ଥା କରିଛନ୍ତି ।

ବିଦେଶୀ ସୁପରବଜାର କ୍ରୟ କରିବାର ଦକ୍ଷତା ଏବଂ ଆୟତନ କାରଣରୁ ହୁଏତ ଉତ୍ପାଦିତ ଦ୍ରବ୍ୟର ମୂଲ୍ୟ କମ୍ ହୋଇପାରେ । ଯୁକ୍ତରାଜ୍ୟ (ୟୁକେ)ରେ ସୁପରମାର୍କେଟର ବଜାର ଅଂଶ ଓ ଯୋଗାଣକାରୀମାନଙ୍କୁ ଦିଆଯାଉଥିବା ହାରାହାରି ମୂଲ୍ୟ ମଧ୍ୟରେ ନକରାତ୍ମକ ସମ୍ପର୍କ ଦେଖାଯାଏ । କାରଣ ଯୁକ୍ତରାଜ୍ୟର ସୁପରମାର୍କେଟ ଟେସ୍‌କୋ ତା'ର ଯୋଗାଣକାରୀମାନଙ୍କୁ ଖୁଚୁରା ବ୍ୟବସାୟୀ ଦେଉଥିବା ମୂଲ୍ୟଠାରୁ ହାରାହାରି ୪% କମ୍ ଦିଏ । ସପୁରମାର୍କେଟଗୁଡ଼ିକ ଦ୍ୱାରା ଅନେକ ଅଭିସନ୍ଧିମୂଳକ (Malpractices) ବିଶ୍ୱବଜାରରେ ଦେଖାଯାଇଛି । ସେଗୁଡ଼ିକ ହେଲା (୧) ଯୋଗାଣକାରୀଙ୍କ ତାଲିକା ଅନୁସାରେ ପଇଠ, (୨) ଯୋଗାଣକାରୀଙ୍କର ମୂଲ୍ୟସୂଚୀ କମ୍ ନ ହେଲେ ସେମାନଙ୍କୁ ତାଲିକାରୁ ବାଦ ଦେବା, (୩) ନୂତନ ଷ୍ଟୋର ଖୋଲିବା ନାଁରେ ସପ୍ଲାୟରଠାରୁ ଅର୍ଥ ଭରଣା, (୪)

ଉତ୍ପାଦନକାରୀମାନଙ୍କ ଠାରୁ ସୁପରମାର୍କେଟ୍‌ରେ ବିକ୍ରୀ ହେତୁ କିଛି ଅନୁପାତ ହ୍ରାସ, (୫) ନିର୍ଦ୍ଦିଷ୍ଟ ଦରଠାରୁ ଅଧିକ ମୂଲ୍ୟରେ ସପ୍ଲାୟର ବିକ୍ରୀ ନ କରିବା, (୬) ବିଳମ୍ବରେ ଅର୍ଥ ପଇଠ କରିବା, (୭) ସପ୍ଲାୟର ପାଖରେ ଅନ୍ୟ ବିକଳ୍ପ ନ ଥିବା ବେଳେ ମୂଲ୍ୟହ୍ରାସ କରିବା, (୮) ବିନା ନୋଟିସ୍‌ରେ ଗୁଣାତ୍ମକମାନ ଓ ପରିମାଣ ହ୍ରାସ, (୯) ନିର୍ଦ୍ଦିଷ୍ଟ ସମୟ ଅଭାବରୁ ତା'ର ରକ୍ଷଣାବେକ୍ଷଣା (Storage) କରିବା ଅସମ୍ଭବ ହେବା, (୧୦) ତାଲିକାରୁ କୌଣସି କାରଣ ନଥାଇ ସପ୍ଲାୟର ନାଁକୁ ବାଦ ଦେବା, (୧୧) ଋଣ ଦେବା କ୍ଷେତ୍ରରେ ଅଧିକ ସୁଧ ଲାଗୁ କରିବା ଏବଂ (୧୨) ସପ୍ଲାଇ କରି ନ ପାରିଲେ ଦଣ୍ଡ ଦେବା ପାଇଁ ଠିକା ଚୁକ୍ତିରେ ବ୍ୟବସ୍ଥା ରଖିବା ।

ସୁପରମାର୍କେଟ ସଦାସର୍ବଦା ଅନୈତିକ ଢଙ୍ଗରେ କାର୍ଯ୍ୟ କରେ । କ୍ୟାରିଫୋର ଏପରି ବ୍ୟବସାୟ କରିଥିବାରୁ ସାଉଥ କୋରିଆରେ ତା' ଉପରେ ଦଣ୍ଡ ଦିଆଯାଇଥିଲା । ଏପରିକି ଏହି କମ୍ପାନୀକୁ ଇଣ୍ଡୋନେସିଆର ବିଜିନେସ୍ କମ୍ପିଟିସନ୍ ଅଥରିଟି ୨୦୦୫ ମସିହାରେ ତାଲିକାଭୁକ୍ତ ସପ୍ଲାୟର ଠାରୁ ମାଲ୍ ନ ଉଠାଇବା କାରଣରୁ ୧,୭୦,୦୦୦ ଡଲାର ଫାଇନ୍ ଦେବାକୁ ହୋଇଥିଲା । କାରଣ ସପ୍ଲାୟର ସେହି ହେତୁ ଦେବାଳିଆ ପାଲଟି ଯାଇଥିଲା ।

କୃଷକ ଉଚ୍ଚ ମୂଲ୍ୟ ପାଇବ ଏହାର କୌଣସି ଗ୍ୟାରେଣ୍ଟି ନାହିଁ କାରଣ ଦରଦାମ କ୍ରେତା ଓ ସପ୍ଲାୟର ମଧ୍ୟରେ ସ୍ଥିରକୃତ ହୁଏ । ଏହାର ଅର୍ଥ ହେଉଛି ଚାଷୀ ଓ କ୍ରେତା ମଧ୍ୟରେ ଅନ୍ୟ ଏକ ମଧ୍ୟସ୍ଥି ରହିବେ ଯେଉଁମାନେ ଜିନିଷପତ୍ର ଯୋଗାଣ କରିବେ । କୃଷି କ୍ଷେତ୍ରରେ ଠିକାଚାଷ ବା କର୍‌ପୋରେଟ୍ ଚାଷ ଉପରେ ଗୁରୁତ୍ୱ ବୃଦ୍ଧି ପାଇବ । ଠିକା ଚାଷ ଦ୍ୱାରା ଚାଷୀମାନେ ଉପକୃତ ହେବେ ବୋଲି ଯେଉଁ ଯୁକ୍ତି କରାଯାଇଛି, ତାହା ମଧ୍ୟ ଅବାସ୍ତବ । ଭାରତୀୟ କୃଷକ ମାନଙ୍କର ସମସ୍ୟା ବଜାର ବିପଦ ଯେତେ ନୁହେଁ, ତା'ଠାରୁ ଅଧିକ ହେଉଛି ଉତ୍ପାଦନ ବିପଦ । ଉତ୍ପାଦନ ନିର୍ଭର କରେ ଜଳସେଚନ, ଟେକ୍ନୋଲୋଜୀ, ଋଣ ଇତ୍ୟାଦି ଉପରେ ଯାହାକୁ ବହୁ ଦ୍ୱୈବିକ ବା ମଲ୍‌ଟିବ୍ରାଣ୍ଡ ବ୍ୟବସାୟ ସମାଧାନ କରିପାରିବ ନାହିଁ । ଏଥିପାଇଁ ରାଷ୍ଟ୍ରକୁ ପୁଞ୍ଜି ବିନିଯୋଗ କରିବାକୁ ହେବ । ଏ ସମ୍ପର୍କରେ ବହୁ ଦ୍ୱୈବିକ ମଲ୍‌ଟିବ୍ରାଣ୍ଡ ବ୍ୟବସାୟରେ ବିଦେଶୀ ପୁଞ୍ଜି ହାତରେ ଦାୟିତ୍ୱକୁ ନ୍ୟସ୍ତ କରାଯାଇ ପାରିବ ନାହିଁ ।

ଭାରତରେ ୮୫% ହେଉଛନ୍ତି କ୍ଷୁଦ୍ର ଓ ନାମହୀନ ଚାଷୀ । ସେମାନଙ୍କର ଉତ୍ପାଦନ ଯେହେତୁ କ୍ଷୁଦ୍ର ଓ ପ୍ରାଥମିକ ସ୍ତରର ଉତ୍ପାଦନକାରୀମାନଙ୍କ ପାଇଁ ଉଦ୍ଦିଷ୍ଟ, ସେମାନଙ୍କ ସ୍ୱାର୍ଥକୁ ସୁରକ୍ଷା ଦେବାର ଆବଶ୍ୟକତା ରହିଛି । ସେମାନଙ୍କୁ ବର୍ତ୍ତମାନ କୌଣସି ପ୍ରକାର ପ୍ରୋତ୍ସାହନ ଦିଆଯାଉନାହିଁ । ସୁପରମାର୍କେଟ କୃଷି ଉତ୍ପାଦନ ପାଇଁ ବଡ଼ ବଡ଼ ସପ୍ଲାୟରମାନଙ୍କୁ ପସନ୍ଦ କରିବେ । ପଞ୍ଜିକୃତ ଠିକାଦାରୀ କୃଷି କାର୍ଯ୍ୟ ଉପରେ କୌଣସି ନିଷ୍ପତ୍ତି ହୋଇନି । ବହୁ ବର୍ଷ ଧରି ଭାରତୀୟ ଘରୋଇ ବଜାରରେ ସୁପରମାର୍କେଟ କାର୍ଯ୍ୟ କରୁଥିଲେ ମଧ୍ୟ ସେମାନଙ୍କ ୬୦% - ୭୦% ଉଠାଣ ପାଇକାରୀ ବଜାରରୁ ଆସୁଛି । ସେମାନେ ସିଧାସଳଖ ଚାଷୀମାନଙ୍କ ଠାରୁ ଆଣୁ ନାହାନ୍ତି । ତେଣୁ କୃଷକମାନଙ୍କର ଉନ୍ନତି କଥା ଯାହା କୁହାଯାଉଛି, ତାହା ଠିକ୍ ନୁହେଁ ।

**ପାରମ୍ପରିକ ଖୁଚୁରା ବ୍ୟବସାୟ ଓ ନିଯୁକ୍ତି :**

ଯୁକ୍ତି ଦର୍ଶାଇ କୁହାଯାଉଛି ଯେ ଖୁଚୁରା ବ୍ୟବସାୟରେ ୧୦ କୋଟି ଲୋକଙ୍କର ନିଯୁକ୍ତି ହେବ । କିପରି ଏହି ନିଯୁକ୍ତି ହେବ, ସେ ସମ୍ପର୍କରେ ସଠିକ୍ କିଛି କୁହାଯାଇ ନାହିଁ । କାରଣ ଯେଉଁ କୃଷକମାନେ ସୁପରମାର୍କେଟ୍‌କୁ ଜିନିଷ ଦେଉଛନ୍ତି ସେମାନେ କାମରେ ନିଯୁକ୍ତ ଅଛନ୍ତି ଏବଂ ବେକାର ନାହାନ୍ତି । ସରକାରଙ୍କର ଏ ପ୍ରକାର ଯୁକ୍ତି ୧୯୮୯ରେ ପଞ୍ଜାବକୁ ପେପ୍‌ସି ଆସିବା ବେଳେ ମଧ୍ୟ କରାଯାଇଥିଲା ଏବଂ କୁହାଯାଇଥିଲା ଯେ ୫୦୦୦୦ ନିଯୁକ୍ତି ସୃଷ୍ଟି ହେବ । କିନ୍ତୁ ଏହା ବାସ୍ତବରେ ଘଟି ନ ଥିଲା । ଖୁଚୁରା ବ୍ୟବସାୟରେ 'ଡାରଉଇନ୍'ଙ୍କ ତତ୍ତ୍ୱ 'ଜୋରଯାର ମୁଲକ ତାର' ହିଁ କାର୍ଯ୍ୟ କରେ । ବରଂ ଏହା ମୂଲ୍ୟ ଜନିତ ନିଯୁକ୍ତି ହ୍ରାସ କରେ । ଉଦାହରଣ ସ୍ୱରୂପ ଭିଏତନାମକୁ ବିଚାରକୁ ନେବା । ସେଠାରେ ବୁଲା ବିକାଳୀ (street vendor) ମାନଙ୍କ ଦ୍ୱାରା ୧୮ ଗୋଟି ନିଯୁକ୍ତି ସୃଷ୍ଟି ହେଲେ, ୧୦ଟି ହୁଏ ପାରମ୍ପରିକ ଖୁଚୁରା ବ୍ୟବସାୟୀଙ୍କ ଦ୍ୱାରା ଏବଂ ଆଠଟି ଦୋକାନ ବିକାଳୀମାନଙ୍କ ଦ୍ୱାରା ଅଥଚ ବିଗ୍ ସି ପରି ସୁପରମାର୍କେଟ ମାତ୍ର ୪ ଗୋଟି ଲୋକରେ ସେତିକି ଉତ୍ପାଦିତ ଦ୍ରବ୍ୟର ପରିମାଣ ବିକ୍ରୀ କରନ୍ତି । ମେଟ୍ରୋର କ୍ୟାସ ଆଣ୍ଡ କ୍ୟାରି ବିଲାତିବାଇଗଣ ଟନ୍ ପିଛା ୧.୨ ଶ୍ରମିକ ନିୟୋଜିତ କରିବା ବେଳେ ପାରମ୍ପରିକ ପାଇକାରୀ ଦୋକାନ ୨.୯ ଲୋକ ନିଯୁକ୍ତ କରନ୍ତି ।

ଥାଇଲାଣ୍ଡରେ ସୁପର ମାର୍କେଟ୍ ହେବା ଫଳରେ ଖଚୁରା ଷ୍ଟୋର (Mom & Pop) ର ବିଦେଶୀ ପୁଞ୍ଜି ବିନିଯୋଗରୁ ୪ ବର୍ଷ ମଧ୍ୟରେ ୧୪% ଅଂଶ କମି ଯାଇଥିଲା ।

ଭାରତରେ ପାରମ୍ପରିକ ଫଳ ଓ ପରିବା ଖୁଚୁରା ବ୍ୟବସାୟରେ ବିକ୍ରୀ ୩୩% ରୁ ୬୦% କମ୍ ହୋଇଥିବାର ଦେଖାଯାଏ । ବାଙ୍ଗାଲୋର, ଅହମଦାବାଦ ଏବଂ ଚଣ୍ଡୀଗଡ଼ରେ ଯେଉଁଠାରେ ବଡ଼ ବଡ଼ ସୁପରମାର୍କେଟ ରହିଛି ସେଠାରେ ୧୫-୩୦% Foot fall ରେ ୧୦-୩୦% ବିକ୍ରୀ ହ୍ରାସ ଓ ୨୦-୩୦% ଆୟ ହ୍ରାସ ହେବାର ଦେଖାଯାଏ ।

ତେଣୁ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜିବିନିଯୋଗ ହେଲେ ନିଯୁକ୍ତି ସୃଷ୍ଟି ହେବ, ଏକ ଭ୍ରମାତ୍ମକ ଚିତ୍ର । ଏହି ଯୁକ୍ତି ତିନିଗୋଟି ମୌଳିକ ଦୋଷରେ ଦୋଷୀ । କାରଣ ଯୁକ୍ତି କରାଯାଉଛି ଯେ କୃଷକ, ତେଜରାତି ଦୋକାନୀ ଏବଂ ଖାଉଟି ଏହା ଦ୍ୱାରା ଉପକୃତ ହେବ । କିନ୍ତୁ ଏମାନେ ସମାନ ପ୍ରକାର ଗୋଷ୍ଠୀ ନୁହନ୍ତି କିମ୍ବା ସେମାନଙ୍କର ସମାନ ଧରଣର ସ୍ୱାର୍ଥ ଜଡ଼ିତ ଅଛି । ଏମାନଙ୍କ ମଧ୍ୟରେ ଥିବା ଶ୍ରେଣୀଗତ ଓ ସାମାଜିକ ଦ୍ୱନ୍ଦ୍ୱକୁ ଏଥିରେ ଏଡ଼ାଇ ଦିଆଯାଉଛି । ପ୍ରତ୍ୟେକ କ୍ଷେତ୍ରରେ ଉଚ୍ଚ ଆୟକାରୀ ବର୍ଗ ସହିତ ସମତୁଲ କରି ନିର୍ଦ୍ଧାରଣ କରାଯାଉଛି ।

ଆଇ.ସି.ଆର.ଆଇ.ଇ.ଆର. ଖାଉଟିମାନଙ୍କୁ ପାଞ୍ଚଗୋଟି ପର୍ଯ୍ୟାୟରେ ବିଭକ୍ତ କରିଛି । ଏହାର ସବୁଠାରୁ ନିମ୍ନରେ ଥିବା ଖାଉଟିର ମାସିକ ଆୟ ଦଶହଜାର ଟଙ୍କା ବା ତା'ଠାରୁ କମ୍ । ତେଣୁ ସହରମାନଙ୍କରେ ଯେଉଁମାନେ ରହୁଛନ୍ତି, ସେମାନେ ନିମ୍ନ ଆୟକାରୀ ବର୍ଗ ପର୍ଯ୍ୟାୟଭୁକ୍ତ । କେବଳ କେତେକ ମୁଷ୍ଟିମେୟ ଯାହାକୁ ସଂଖ୍ୟାଲଘୁ କହି ପାରିବା, ସେମାନେ ଅନ୍ୟ ଚାରିଗୋଟି ପର୍ଯ୍ୟାୟଭୁକ୍ତ ।

ତଦନୁରୂପ କୁହାଯାଇଛି ଯେ ସମସ୍ତ କୃଷକମାନେ ପ୍ରାଥମିକ ଭାବେ ବଜାର ପାଇଁ ଉତ୍ପାଦନ କରୁଛନ୍ତି ଏବଂ ସେମାନଙ୍କର ପୁଞ୍ଜି ଓ ଭିତ୍ତିଭୂମି ପ୍ରତି ପ୍ରବେଶ ରହିଛି । ଆଇ.ସି.ଆର.ଆଇ.ଇ.ଆର (ICRIER) ର ଏହି ତଥ୍ୟ ଅନୁସନ୍ଧାନ କେବଳ ବାଙ୍ଗାଲୋରର ନିକଟରେ ଥିବା ହୋସ୍‌କୋଟର ୧୯୭ ଗୋଟି ପରିବାରକୁ ନେଇ କରାଯାଇଛି । ସେମାନେ ଅର୍ଥ ଆୟକାରୀ ଫସଲ ଉତ୍ପାଦନ କରନ୍ତି ଏବଂ ପ୍ରତ୍ୟେକଙ୍କ ନିକଟରେ ଅତ୍ୟନ୍ତ କମ୍ ୪ ଏକର ଜମି ରହିଛି । ୫୧% ଊର୍ଦ୍ଧ୍ୱ ଜମିକୁ ଜଳସେଚନର ବ୍ୟବସ୍ଥା ଅଛି ଏବଂ ପ୍ରାୟ ସମସ୍ତେ ଫୁଲ କୋବି

ଉତ୍ପାଦନ କରନ୍ତି । ସେମାନଙ୍କର ଆୟକୁ ଆଧାରକରି ଦେଶର କୃଷକମାନଙ୍କର ଆୟକୁ ବିଚାରକୁ ନେବା ଭ୍ରମାତ୍ମକ । ଖାଉଟି ମାନଙ୍କର ଗ୍ରହଣଶୀଳତାକୁ ଏକା ପ୍ରକାର ବିଚାର କରିବା ମଧ୍ୟ ଠିକ୍ ନୁହେଁ । ଖାଉଟି ବା ଉପଭୋକ୍ତାକୁ ବିଚାର କରିବା ବେଳେ ତା'ର ସାମାଜିକ, ରାଜନୈତିକ ଶ୍ରେଣୀ ଚରିତ୍ରକୁ ଐତିହାସିକ ପୃଷ୍ଠଭୂମିରେ ବିଚାର କରିବାର ଆବଶ୍ୟକତା ରହିଛି । କିନ୍ତୁ ଏ କ୍ଷେତ୍ରରେ ଏହାକୁ ବିଚାର ପରିସରକୁ ଅଣାଯାଇନି । ଉପଭୋକ୍ତାମାନଙ୍କର ଚାହିଦା ଏବଂ ଦୃଷ୍ଟିଭଙ୍ଗୀ, ଉତ୍ପାଦନ ପ୍ରକ୍ରିୟା, ଚାହିଦା ଓ ବିତରଣ ବ୍ୟବସ୍ଥା ଇତ୍ୟାଦିକୁ ଦ୍ୱନ୍ଦାତ୍ମକ ଭାବରେ ପରସ୍ପର ସହିତ ଯୁକ୍ତ । ତେଣୁ ଏହି ବ୍ୟବସ୍ଥା ଅତ୍ୟନ୍ତ ଜଟିଳ ଯେହେତୁ ଉତ୍ପାଦନ, ବିତରଣ, ଖୁଚୁରା ବିକ୍ରୀ ଓ ବ୍ୟବହାର ସହିତ ସମ୍ପର୍କ ରହିଛି ।

ଏହି କାରଣରୁ କୁହାଯାଇ ପାରିବ ଯେ କରପୋରେଟ୍ ଖୁଚୁରା ବ୍ୟବସାୟ ଏକ ଭିନ୍ନ ବ୍ୟବସାୟିକ ବ୍ୟବସ୍ଥା । ଭାରତରେ ବହୁ ସଂଖ୍ୟକ ଲୋକ ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଭାବେ ଅତ୍ୟନ୍ତ ନିମ୍ନ ସ୍ଥାନରେ ଥିବାବେଳେ ଏକ ନୂତନ ବ୍ୟବସାୟିକ ବ୍ୟବସ୍ଥା ଲାଗୁ କରିଦେବା ଭାରତ ପାଇଁ ମହଙ୍ଗା ସାବ୍ୟସ୍ତ ହେବ । କରପୋରେଟ୍ ଖୁଚୁରା ବ୍ୟବସାୟ କୃଷି ଉପାଦାନକୁ ଉଦ୍ୟୋଗୀକରଣ କରି, ବର୍ତ୍ତମାନର ବ୍ୟବସାୟ ବ୍ୟବସ୍ଥାକୁ ଉତ୍ଖାତ କରି ଏବଂ ଏହାକୁ ପୁଞ୍ଜିଦ୍ୱାରା ରୁଦ୍ଧ କରି, ଖୁଚୁରା ଖାଦ୍ୟ ବେପାରରେ ପ୍ରବେଶ କରି ସମ୍ପୂର୍ଣ୍ଣ ବ୍ୟବସ୍ଥାକୁ ପରିବର୍ତ୍ତନ କରିଦେବ ।

ଏହାର ପ୍ରଥମ ପଦକ୍ଷେପ ହେବ ଉତ୍ପାଦନ ସମ୍ପର୍କୀୟ ନିଷ୍ପତ୍ତିକୁ କରପୋରେଟ୍ କ୍ରେତାମାନଙ୍କ ହାତକୁ କ୍ଷମତା ହସ୍ତାନ୍ତର । ଏହା ଗୁଣାତ୍ମକ ନିର୍ଦ୍ଧାରଣ ଜରିଆରେ ହେବ । ଦ୍ୱିତୀୟରେ ଅଳ୍ପ ସମୟରେ ଅଧିକ ଉତ୍ପାଦନ ଲକ୍ଷ୍ୟ ହାସଲ ପାଇଁ ଅତ୍ୟଧିକ ପରିମାଣର ସାର, ଔଷଧ, ପାଣି ଏବଂ ଯନ୍ତ୍ରପାତିର ବ୍ୟାପକ ବ୍ୟବହାର ଉପରେ ଗୁରୁତ୍ୱ । ତୃତୀୟତଃ ଋଣ, ଅତ୍ୟାବଶକୀୟ ଦ୍ରବ୍ୟ ସମ୍ପର୍କିତ ଚୁକ୍ତିନାମା । ଚାଷୀମାନଙ୍କୁ ଋଣ, ସାର, କୀଟନାଶକ ଔଷଧ ଦେବା ବେଳେ କମ୍ପାନୀ କରିଥିବା ଚୁକ୍ତିନାମାକୁ ଖିଲାପ କଲେ କମ୍ପାନୀ ଉତ୍ପାଦିତ ଦ୍ରବ୍ୟକୁ କ୍ରୟ କରିବାକୁ ମନା କରିପାରେ । ଚତୁର୍ଥ ହେଉଛି ଚାଷୀଙ୍କୁ ବିଳମ୍ବରେ ଅର୍ଥ ପଇଠ କରିବା । ଏହାର ପ୍ରଭାବ ବିଭିନ୍ନ ଚାଷୀଙ୍କ ଉପରେ ଭିନ୍ନ ଭିନ୍ନ ହେବ ।

କୃଷକମାନଙ୍କୁ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

୧. ପୁଞ୍ଜିପତି କୃଷକ : ଯେଉଁମାନେ ଶ୍ରମିକମାନଙ୍କୁ ଲଗାଇ ଅତ୍ୟଧିକ ଉତ୍ପାଦନ କରନ୍ତି ଓ ଲାଭ ପାଆନ୍ତି । ଏମାନେ ଠିକା କୃଷି ବ୍ୟବସ୍ଥାରୁ ଲାଭ ପାଇବେ । କିନ୍ତୁ ଏମାନେ ମଧ ଅତ୍ୟଧିକ ପୁଞ୍ଜି ବିନିଯୋଗ ଓ ବିପଦର ସମ୍ମୁଖିନ ହେବେ ।

୨. ଧନୀ ଓ ମଧ୍ୟବିତ୍ତ ଚାଷୀ : ଏମାନେ ଶ୍ରମିକମାନଙ୍କୁ ବ୍ୟବହାର କରି ଉତ୍ପାଦନ କଲେ ମଧ ବଜାରକୁ ଚାହିଁ ଉତ୍ପାଦନ କରନ୍ତି । ଏମାନଙ୍କ ପାଇଁ ଅଧିକ ପୁଞ୍ଜି ବିନିଯୋଗ କରି କଣ୍ଟ୍ରାକ୍ଟ ଚାଷ କରିବା କଷ୍ଟସାଧ ବ୍ୟାପାର ।

୩. କ୍ଷୁଦ୍ର ଓ ନାମ ହୀନ ଚାଷୀ ମାନଙ୍କର ସଂଖ୍ୟା ଭାରତରେ ସବୁଠାରୁ ବେଶୀ । ସେମାନଙ୍କର ବଜାର ସହିତ ସମ୍ପର୍କ ଭିନ୍ନ । ସେମାନେ ଯାହା ଉତ୍ପାଦନ କରନ୍ତି, ତାହା ପାରିବାରିକ ଆବଶ୍ୟକତା ପୂରଣ କରିବା ସହିତ ଯାହା ବଳକା ରହେ ସେଥିରେ ଋଣ ଶୁଝନ୍ତି, ଶିକ୍ଷା, ସ୍ୱାସ୍ଥ୍ୟରେ ଖର୍ଚ୍ଚ କରନ୍ତି । ଏମାନଙ୍କ ପାଇଁ କଣ୍ଟ୍ରାକ୍ଟ ଚାଷ ସମ୍ପୂର୍ଣ୍ଣ ଅସମ୍ଭବ ।

ତେଣୁ କରପୋରେଟ୍ ଖାଦ୍ୟ ବ୍ୟବସ୍ଥା ବୃଦ୍ଧି ପାଇବା ସହିତ ପାରମ୍ପରିକ ସଂଗ୍ରହ ଆସ୍ତେ ଆସ୍ତେ କମିବାକୁ ଲାଗିବ ଏବଂ ବଜାରରେ ଏହି ଉତ୍ପାଦନକାରୀମାନେ ଦେଖିବାକୁ ମିଳିବେ ନାହିଁ । ବ୍ୟାପକ କଣ୍ଟ୍ରାକ୍ଟ ଚାଷ ହେବା ସ୍ଥାନରେ ଖାଦ୍ୟ ଉତ୍ପାଦନ କରୁଥିବା ଫସଲ ମଧ ହ୍ରାସ ପାଇବାକୁ ଲାଗିବ ଏବଂ ଏପରି ଅବସ୍ଥା ସୃଷ୍ଟି ହେବ ଯେତେବେଳେ ଏହି କ୍ଷୁଦ୍ରଚାଷୀମାନେ ନିଜର ଜମି ହରାଇବେ । ଉଦାହରଣ ସ୍ୱରୂପ କର୍ଣ୍ଣାଟକରେ କଣ୍ଟ୍ରାକ୍ଟ ଫାର୍ମ ଗୋଲାପ ଚାଷ କରିବା ପାଇଁ ଗୋଟିଏ ଅଞ୍ଚଳର ଦଳିତ ଓ ଆଦିବାସୀ ମାନଙ୍କ ଠାରୁ ଜମି ନେବା ଏବଂ ଲିଜ୍ ସୂତ୍ରରେ ଦେଇଥିବା ଅର୍ଥ ବଜାର ମୂଲ୍ୟର ମାତ୍ର ଏକ ତୃତୀୟାଂସ ହୋଇଥିବାର ଉଦାହରଣ ରହିଛି ।

ଏହାର ପ୍ରଭାବ କୃଷି ଶ୍ରମିକମାନଙ୍କ ପାଇଁ ସବୁଠାରୁ ଉତ୍କଟ ହେବ । କରପୋରେଟ୍ ଖାଦ୍ୟ ବ୍ୟବସ୍ଥାରେ ଏମାନଙ୍କ ସମ୍ପର୍କରେ ଆଦୌ ଆଲୋଚନା ହୋଇନି କିନ୍ତୁ ଯାହା ତଥ୍ୟ ଓ ପରିସଂଖ୍ୟାନରୁ ଜଣାଯାଉଛି ସେମାନେ ଏହା ଦ୍ୱାରା ଆଦୌ ଉପକୃତ ହେବେ ନାହିଁ । କୃଷି ଶ୍ରମିକମାନେ କାମରୁ ବଞ୍ଚିତ ହେବେ ଏବଂ

କଣ୍ଟ୍ରାକ୍ଟ ଫାର୍ମରେ ଅଧିକ ସଂଖ୍ୟକ ମହିଳା ଓ ଦେଶାନ୍ତରୀ ଶ୍ରମିକମାନଙ୍କୁ ବ୍ୟବହାର କରାଯାଇ ସେମାନଙ୍କୁ ଶୋଷଣ କରାଯିବ ।

**ଖାଦ୍ୟ ମୁଦ୍ରାସ୍ଫିତୀ ଉପରେ ପ୍ରଭାବ :**

ଖାଦ୍ୟ ମୁଦ୍ରାସ୍ଫୀତିକୁ ରୋକିବା ପାଇଁ ସୁପରମାର୍କେଟ ସାହାଯ୍ୟକାରୀ ହେବ ଯୁକ୍ତି କରାଯାଉଛି । ବିଭିନ୍ନ ରାଷ୍ଟ୍ର ଯଥା- ଲାଟିନ୍ ଆମେରିକାର ମେକ୍ସିକୋ, ନିକାରଗୁଆ, ଆର୍ଜେଣ୍ଟିନା, ଆଫ୍ରିକାର କେନ୍ୟା, ମାଡ଼ାଗାସ୍କର, ଏସିଆ ମହାଦେଶର ଥାଇଲାଣ୍ଡ, ଭିଏତ୍‌ନାମ, ଭାରତରୁ ଦେଖାଯାଇଛି ଯେ ସୁପରମାର୍କେଟରେ ମିଳୁଥିବା ପରିବା ଓ ଅନ୍ୟାନ୍ୟ ମୌଳିକ ଖାଦ୍ୟ ସାମଗ୍ରୀର ମୂଲ୍ୟ ପାରମ୍ପରିକ ବଜାର ମୂଲ୍ୟଠାରୁ ବେଶୀ । ଚୀନ୍‌ରେ ଯେଉଁଠାରେ ୱାଲମାର୍ଟ, ଟେସ୍‌କୋ ଓ କ୍ୟାରିଫୋରର ଶହ ଶହ ସଂଖ୍ୟାରେ ଷ୍ଟୋର ରହିଛି, ସେଠାରେ ୨୦୦୪ ମସିହାଠାରୁ ଖାଦ୍ୟ ମୁଦ୍ରାସ୍ଫୀତି ସମସ୍ୟା ସୃଷ୍ଟି କରିଛି ଏବଂ ଗତବର୍ଷ କିଛି ଆଞ୍ଚଳିକ ସରକାର ସବ୍‌ସିଡ଼ି ଦେଇ ଉପଭୋକ୍ତାମାନଙ୍କ ଉପରେ ବୋଝ ଊଣା କରିବାକୁ ଚେଷ୍ଟା କରୁଛନ୍ତି ।

ଯଦି ଏହାକୁ ମଧ୍ୟ ଗ୍ରହଣ କରାଯାଏ ଯେ ସୁପରମାର୍କେଟ୍‌ରେ ଜିନିଷର ମୂଲ୍ୟ ସ୍ୱଳ୍ପ, କିନ୍ତୁ ନିମ୍ନ ଆୟକାରୀ ବର୍ଗ ଖାଦ୍ୟଦ୍ରବ୍ୟର ଅଧିକ ମୂଲ୍ୟ ଦେବାକୁ ବାଧ୍ୟ ହେବେ କାରଣ ସେମାନେ ସୁପରମାର୍କେଟଠାରୁ ବହୁଦୂରରେ ବଞ୍ଚନ୍ତି ଏବଂ ଯେଉଁ ଅଞ୍ଚଳରେ ଅଳ୍ପ ଖର୍ଚ୍ଚରେ ଚଳି ହେବ, ସେଠାରେ ବାସ କରନ୍ତି । ଆଧୁନିକ ଖୁଚୁରା ବ୍ୟବସାୟ ସହ ନିମ୍ନତମ ଖାଦ୍ୟଦ୍ରବ୍ୟର ମୂଲ୍ୟରେ କୌଣସି ସମ୍ପର୍କ ନାହିଁ ଏବଂ ଦରିଦ୍ର ଉପଭୋକ୍ତାଙ୍କ ପାଇଁ ଉନ୍ନତ ଖାଦ୍ୟ ସୁରକ୍ଷା ମିଳିପାରୁଛି । ତେଣୁ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗ ଖାଦ୍ୟ ମୁଦ୍ରାସ୍ଫୀତିକୁ ରୋକିପାରିବ । ଏ ଯୁକ୍ତି ଅବାସ୍ତବ ଓ କପୋଳକଳ୍ପିତ । ଇମ୍ପେରିକାଲ ପ୍ରମାଣରୁ ଦେଖାଯାଏ ଯେ ସୁପର ମାର୍କେଟ ବଜାର କ୍ଷମତାକୁ କେନ୍ଦ୍ରୀଭୂତ କରିବ ଏବଂ ଉପଭୋକ୍ତାମାନେ ଅଧିକ ମୂଲ୍ୟ ଦେବାକୁ ବାଧ୍ୟ ହେବେ କାରଣ ବଜାରରେ ପ୍ରତିଯୋଗିତା ରହିବ ନାହିଁ ।

**ନୀତିଗତ ପ୍ରଶ୍ନ ଏବଂ ନିୟନ୍ତ୍ରଣ ଯନ୍ତ୍ର :**

ବହୁ ବ୍ରୈବିକ ମଲ୍‌ଟିବ୍ରାଣ୍ଡ ବ୍ୟବସାୟରେ ବିଦେଶୀ ପୁଞ୍ଜି ହେଉ ବା ଏକକ

ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ହେଉ, ଏହାକୁ ନିୟନ୍ତ୍ରଣ କରିବା ପାଇଁ କୌଣସି ନୀତି ନାହିଁ କିମ୍ବା ଯନ୍ତ୍ର ନାହିଁ । ବହୁ କ୍ଷେତ୍ରରେ ଦେଖାଯାଇଛି ନିୟନ୍ତ୍ରଣ ନାମରେ ବେନିୟନ୍ତ୍ରଣ ହେଉଛି ଏବଂ ଆଇନ୍ ଆଖିରେ ଧୂଳି ଫିଙ୍ଗି କମ୍ପାନୀମାନେ ସବୁ ସୁବିଧା ନେଉଛନ୍ତି । ପାଇକାରୀ ବ୍ୟବସାୟ ନାଁରେ ଖୁଚୁରା ବ୍ୟବସାୟରେ ପ୍ରବେଶକୁ ରୋକାଯାଇ ପାରିବ ନାହିଁ ।

ବିଦେଶୀ ପୁଞ୍ଜି ସମ୍ପର୍କରେ ଯୁକ୍ତି କରାଯାଉଛି ଯେ ରାଜ୍ୟମାନେ ସ୍ୱାଧୀନ ଭାବରେ ନିଷ୍ପତ୍ତି ଗ୍ରହଣ କରିପାରିବେ । ଏଥିସହିତ ବିଶ୍ୱବାଣିଜ୍ୟ ସଂଗଠନ ଓ ଟ୍ରିମସ୍ ସମ୍ପୃକ୍ତ ଥିବାରୁ ଏହାକୁ ରାଷ୍ଟ୍ର ସ୍ତରରେ ବିଚାର ନ କରି ରାଜ୍ୟସ୍ତରରେ ବିଚାର କରିବା ଏକ ଭୁଲ ପଦକ୍ଷେପ ।

ବିଦେଶୀ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ଚୀନ୍‌ର ଉଦାହରଣ ଦିଆଯାଉଛି । ଚୀନ୍ ପ୍ରଥମେ ୧୯୯୨ ମସିହାରେ ଖୁଚୁରା ବ୍ୟବସାୟରେ ୨୬% ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ଅନୁମତି ପ୍ରଦାନ କରିଥିଲା । ଏହାର ଦଶବର୍ଷ ପରେ ଏହି ପରିମାଣକୁ ୪୦% ବୃଦ୍ଧି କଲା ଏବଂ ୨୦୦୪ ମସିହା ବେଳକୁ ଶତପ୍ରତିଶତ ବିଦେଶୀ ପୁଞ୍ଜି ଲଗାଯିବାର ଅନୁମତି ଦେଲା । ଏହା ମଧ୍ୟ କେତେକ ସହରାଞ୍ଚଳରେ ସୀମାବଦ୍ଧ ରହିଲା । ଏପରିକି ପୂର୍ବରୁ ଦେଇଥିବା କେତେକ ଅନୁମତିକୁ ମଧ୍ୟ ପ୍ରତ୍ୟାହାର କରି ନିଆଗଲା । ଚୀନ୍ ନିଜର ସର୍ତ୍ତ ମୁତାବକ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜିର ଅନୁମତି ପ୍ରଦାନ କରିଛି । ୱାଲମାର୍ଟ ପରି ବୃହତ ବହୁ ରାଷ୍ଟ୍ରୀୟ ଖୁଚୁରା ବ୍ୟବସାୟୀ ଏବଂ ବୃହତ ନିଯୁକ୍ତିଦାତାର କୁଖ୍ୟାତି ବା ଅପଯଶ ଅନେକ ।

ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ଅନେକ ସମୃଦ୍ଧି ଓ ସୁଖ ସାଧାରଣ କୃଷକ, ଅନୌପଚାରିକ ବ୍ୟବସାୟୀ, ବୁଲା ବିକାଳୀ, ତେଜରାତି ଦୋକାନୀମାନଙ୍କୁ ଆଣିଦେବ ବୋଲି ଅନେକ ଯୁକ୍ତି ହେଉଛି କିନ୍ତୁ ୱାଲମାର୍ଟର ମେକ୍‌ସିକୋ, ଦକ୍ଷିଣ ଆଫ୍ରିକା, ଚିଲି, ଥାଇଲାଣ୍ଡ ଇତ୍ୟାଦିରେ ଦେଖାଯାଇଛି ଯେ କର୍ମଚାରୀଙ୍କର ମଜୁରି ବୃଦ୍ଧି ଘଟିନି, କୃଷକର ଆୟ ବଢ଼ିନି ବା ଶ୍ରମିକମାନଙ୍କର ଜୀବନ ଧାରଣର ମାନରେ କିଛି ପରିବର୍ତ୍ତନ ହୋଇନି । ଅପରପକ୍ଷରେ ସେମାନେ ସ୍ୱଚ୍ଛ ମୂଲ୍ୟରେ ବ୍ୟବସାୟ କରି ସେମାନଙ୍କର ପ୍ରତିଯୋଗିମାନଙ୍କୁ ରାସ୍ତାରୁ ହଟାଇ ଦେଉଛନ୍ତି ।

ୱାଲମାର୍ଟ ନିଜର ବ୍ୟବସାୟିକ ଜାଲ ବିଛାଇବାକୁ ଦୁର୍ନୀତିର ପନ୍ଥାକୁ ଆପଣାଏ ଯାହା ମେକ୍‌ସିକୋରେ ଘଟିଥିଲା । ଏ ସମ୍ପର୍କିତ ଅଭିଯୋଗ ତଥ୍ୟ ଓକିଲ ସର୍ଜିଓ ସିସେରୋ ପ୍ରକାଶ କରିଥିଲେ । ତାଙ୍କର ଏହି ଅଭିଯୋଗର ସତ୍ୟାସତ୍ୟ ଫେଡ଼େରାଲ ବ୍ୟୁରୋ ଅଫ୍ ଇନ୍‌ଭେଷ୍ଟିଗେସନ୍ ପକ୍ଷରୁ କରାଯାଇଥିଲା ଏବଂ ଯେଉଁଥିରୁ ଜଣାପଡ଼ିଥିଲା ଯେ ୱାଲମାର୍ଟ ଆଞ୍ଚଳିକ ରାଜନେତା ଓ ସେମାନଙ୍କର ସଂଗଠନମାନଙ୍କୁ ୧୬ ନିୟୁତ ଡଲାର ଚାନ୍ଦା ଆକାରରେ ଦେଇଛନ୍ତି । ଏହାକୁ କମ୍ପାନୀର ବରିଷ୍ଠ କର୍ମକର୍ତ୍ତାମାନେ ସ୍ୱୀକାର କରିଛନ୍ତି କାରଣ ବ୍ୟବସାୟ କରିବା ବେଳେ ଏପରି ଟଙ୍କା ଦିଆଯାଏ ବୋଲି ସେମାନେ କହିଛନ୍ତି ।

ଭାରତରେ ୱାଲମାର୍ଟ ପ୍ରବେଶ ନେଇ ସେହିପରି ୧୨୫ କୋଟି ଟଙ୍କା ଅର୍ଥ ଖର୍ଚ୍ଚ କରିଛି ବୋଲି ସଂସଦରେ ମଧ୍ୟ ଅଭିଯୋଗ ଆସିଛି ଏବଂ ସେ ସମ୍ପର୍କରେ ଅନୁସନ୍ଧାନ କରାଯିବ । କିନ୍ତୁ ଏହା ନିରାଟ ସତ୍ୟ ଯେ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗ ହେଉଛି ସବୁଠାରୁ ବଡ଼ ଦଲାଲୀ କାରବାର । ଏହି ଆମେରିକୀୟ କମ୍ପାନୀର ବାର୍ଷିକ ବ୍ୟବସାୟ ୪୪,୪୦୦ କୋଟି ଡଲାର ରହିଛି । ଭାରତର ଖୁଚୁରା ବ୍ୟବସାୟର ପରିମାଣ ୫୦ ହଜାର କୋଟି । ଏହା ୨୦୨୦ ମସିହା ବେଳକୁ ୧ ଲକ୍ଷ କୋଟି ଡଲାର ହେବ ବୋଲି ଆକଳନ କରାଯାଇଛି । ତେଣୁ ୨୦୨୦ ମସିହା ବେଳକୁ ୱାଲମାର୍ଟ ପରି ସଂଗଠିତ ଖୁଚୁରା ବ୍ୟବସାୟୀ ଖୁଚୁରା ବଜାରରେ ୨୫% ରୁ ୩୦% ବଜାର ଅଂଶଧନ ଅକ୍ତିଆର କରିବ । ତେଣୁ ୱାଲମାର୍ଟ ହେଉଛି ଦଲାଲ ବା ମଧ୍ୟସ୍ଥି ଏବଂ ବିକ୍ରୟକାରୀ (Salesman) । ଗତମାସ ନ୍ୟୁୟର୍କ ଟାଇମ୍‌ସ ପତ୍ରିକାରେ ପ୍ରକାଶ ପାଇଥିଲା ଯେ ଆମେରିକାର ପିଆଜ ଚାଷୀମାନେ ୱାଲମାର୍ଟ ଚକ୍ରାନ୍ତର ଶୀକାର ହୋଇଥିଲେ କାରଣ ପିଆଜ ଚାଷୀଙ୍କ ଠାରୁ ଅଳ୍ପ ଟଙ୍କାରେ କିଣି ୯ ଗୁଣ ଅଧିକରେ ବିକ୍ରୀ କରିଥିଲା । ଏପରିକି ବାଂଲାଦେଶର ଟାର୍ଜନ ଫ୍ୟାସନ୍ ଫ୍ୟାକ୍ଟେରୀରେ ୧୧୨ଜଣ ଶ୍ରମିକ କାର୍ଯ୍ୟ କରିବା ବେଳେ ମୃତ୍ୟୁ ବରଣ କରିଛନ୍ତି। ଏଥିପାଇଁ ୱାଲମାର୍ଟ ଦାୟୀ । କାରଣ ୱାଲମାର୍ଟ ନିର୍ଦ୍ଦେଶକ ମଣ୍ଡଳୀର ନିର୍ଦ୍ଦେଶକ ଶ୍ରୀଦେବୀ କଲାଭକଲାନୁ ନିମ୍ନମାନର ପୋଷାକ ପ୍ରସ୍ତୁତ କରିବା ପାଇଁ ବାରମ୍ବାର ବାଧ କଲେ । ତାଙ୍କ ପାଇଁ ଶ୍ରମିକମାନଙ୍କର ସୁରକ୍ଷା ମୂଲ୍ୟହୀନ ।

ଏପରି ସ୍ଥିତିରେ ଭାରତ ସରକାର ସଂସଦରେ ବିଦେଶୀ ପୁଞ୍ଜି ବିନିଯୋଗକୁ ଗୃହୀତ କରି ନେଇଛନ୍ତି । ଏହା ଦେଶର ମୌଳିକ ଦ୍ରବ୍ୟମାନଙ୍କ ଉପରେ ଯେଉଁ ପ୍ରଭାବ ପକାଇବ, ତାକୁ ମୁକାବିଲା କରିବାକୁ ଲୋକମାନେ ସକ୍ଷମ ହେବେ ନାହିଁ । ୱାଲମାର୍ଟ ପରି ବିରାଟ ବିରାଟ ଷ୍ଟୋର ପାଇଁ ଆବଶ୍ୟକ ହେବା ବିଦ୍ୟୁତ୍ ଯୋଗୁ ଅନ୍ୟମାନେ ବିଦ୍ୟୁତ୍ ପାଇବାରୁ ବଞ୍ଚିତ ହେବେ ଏବଂ ବିଦ୍ୟୁତ୍ ସଂକଟ ଦେଖାଦେବ । ସରକାର ଯେଉଁ ବିକାଶ କଥା କହୁଛନ୍ତି, ତାହା ବିନାଶର କାରଣ ହେବ । ବହୁମୁଖୀ ଅସାମାନତା ସୃଷ୍ଟି ହେବ । ଏହା ଜୀବନ ଓ ଜୀବିକାର ପ୍ରଶ୍ନ ନେଇ ଛିଡ଼ା ହେବ ।

ଶହେ ବର୍ଷ ତଳର ଘଟଣାକୁ ମନେପକାଇବା । ବିହାରର ଚମ୍ପାରଣ ଜିଲ୍ଲାର ଗରିବ ଚାଷୀମାନେ ବ୍ରିଟିଶ ବ୍ୟବସାୟୀଙ୍କ ଚାପରେ ଖାଦ୍ୟଶସ୍ୟ ଉତ୍ପାଦନ ପରିବର୍ତ୍ତେ ନୀଳଚାଷ କରିବାକୁ ଆରମ୍ଭ କଲେ । ସ୍ୱଳ୍ପ ସମୟ ମଧ୍ୟରେ ସେହି ବ୍ୟବସାୟୀମାନେ ତା'ଉପରେ ସମ୍ପୂର୍ଣ୍ଣ ମାଲିକାନା ଜାହିର କଲେ । ସେମାନେ ଏହାର ଉତ୍ପାଦନ, ବଜାରରେ ବିକ୍ରୀ ଓ ଲାଭ ସବୁନେଲେ । ଭାରତୀୟ ଜାତୀୟ କଂଗ୍ରେସ ପକ୍ଷରୁ ଏହା ବିରୁଦ୍ଧରେ ଆନ୍ଦୋଳନ ହେଲା ଏବଂ ଏଥିରୁ ଚାଷୀଙ୍କୁ ମୁକ୍ତ କରିବାକୁ ବହୁ ବର୍ଷ ଲାଗିଗଲା । ୧୭୫୯ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ଓ ପରେ ବ୍ରିଟିଶ ରାଜତନ୍ତ୍ର ଲୁଣ ବ୍ୟବସାୟକୁ ଏକଚାଟିଆ କରିଦେଲେ । ଏହା ଉପରେ ଟିକସ ଲଦିଲେ । ଏହା ଭାରତର ଗରିବ ଜନସାଧାରଣଙ୍କୁ ବାଧିଲା । ୧୯୩୦ରେ ଲବଣ ସତ୍ୟାଗ୍ରହ ସତ୍ତ୍ୱେ ଲୁଣ ଉପରେ ଟିକସ ଛାଡ଼ କରାଗଲା ନାହିଁ । ୧୯୪୬ ମସିହାରେ ଦେଶରେ ମଧ୍ୟବର୍ତ୍ତୀ ସରକାର ଆସିବା ପରେ ଏହାଛାଡ଼ କରାଗଲା । ମଲ୍‌ଟିବ୍ରାଣ୍ଡ ଓ ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ଏ ଦେଶର ସମ୍ପଦାକୁ ଧୋଇ ନେଇଯିବ । ବହୁ ରାଷ୍ଟ୍ରୀୟ ବିଦେଶୀ କମ୍ପାନୀମାନଙ୍କୁ ମଲ୍‌ଟିବ୍ରାଣ୍ଡ ଓ ଏକକ ଖୁଚୁରା ବ୍ୟବସାୟରେ ଅନୁମତି ଦେବା ଅର୍ଥ ସେମାନେ କେତେଗୁଡ଼ିଏ ନୀତିକୁ ମାନିବାକୁ ବାଧ୍ୟ । କିନ୍ତୁ ଯେଉଁସବୁ ସର୍ତ୍ତ ରହିଛି, ତାହା କମ୍ପାନୀମାନଙ୍କ ପକ୍ଷରେ । ସେଥିରେ କୁହାଯାଇଛି ଯେ ଇନ୍‌ସପେକ୍ଟର ରାଜ୍ ରହିବନି । କମ୍ପାନୀମାନେ ନିଜକୁ ନିଜ ସାର୍ଟିଫିକେଟ୍ ଦେବେ ଯେ ସେମାନେ ସର୍ତ୍ତଗୁଡ଼ିକୁ ପାଳନ କରିବେ । ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ସୀମା ନିର୍ଦ୍ଧାରଣ କରାଯାଇ ନାହିଁ ଯେ ସେମାନେ ବ୍ୟବସାୟ ପୂର୍ବରୁ ଉତ୍ପାଦିତ

ଦ୍ରବ୍ୟ ଯୋଗାଇବା ପାଇଁ କୌଣସି ବ୍ୟବସ୍ଥା ରହିଛି କି ନାହିଁ । ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ପରିଚାଳିତ ବିଦେଶର କ୍ଷୁଦ୍ର ପ୍ରତିଷ୍ଠାନଗୁଡ଼ିକ ଭାରତରେ ସେମାନଙ୍କର ପ୍ରତିଷ୍ଠାନ ଖୋଲିପାରିବେ ନାହିଁ ଏପରି କୌଣସି ସର୍ତ୍ତନାହିଁ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା ସେମାନଙ୍କୁ କେହି ଯାଞ୍ଚ କରିପାରିବେ ନାହିଁ । ସେମାନେ ନିଜକୁ ନିଜେ ସାର୍ଟିଫିକେଟ୍ ଦେବେ ।

ଏହା ନବ୍ୟ ଉଦାରବାଦ ଆଭିମୁଖ୍ୟକୁ ରଖି କରାଯାଇଛି ଏବଂ ବଜାରକୁ ସରକାରୀ ନିୟନ୍ତ୍ରଣ ମୁକ୍ତ କରି ସ୍ୱନିୟନ୍ତ୍ରଣ ଉପରେ ଛାଡ଼ି ଦିଆଯାଉଛି । ଏହାର ପରିଣତି ହେବ ବ୍ୟାପକ ଅସାଧୁ ବ୍ୟବସାୟ ଓ ଦୁର୍ନୀତି । ବଡ଼ ବଡ଼ କରପୋରେଟ୍‌ମାନେ ଅପରାଧ ଜନିତ ଅପରାଧ ପାଇଁ ଯଦି ଶାସ୍ତି ବିଧାନ କରିବାକୁ ଦାବି ହେବ, ତେବେ ଉଦାରବାଦୀମାନେ ବ୍ୟତିବ୍ୟସ୍ତ ହୋଇ ଉଠିବେ ଏବଂ କହିବେ ଯେ ପୁଞ୍ଜି ବିନିଯୋଗ ଉପରେ ଏହା ଗଭୀର ପ୍ରଭାବ ପକାଇବ । ତେଣୁ ବିଦେଶୀ ପୁଞ୍ଜି ବିନିଯୋଗକାରୀ ଆର୍ନ୍ତଜାତୀୟ କମ୍ପାନୀ ସବୁକିଛି ଆଇନ୍ ଓ କଟକଣାରୁ ମୁକ୍ତ ।

ବହୁଦିନ ଧରି ବ୍ୟବସାୟ କରିବାକୁ ଅପେକ୍ଷା ରଖିଥିବା ଏହି ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଇଁ ବର୍ତ୍ତମାନର ନିଷ୍ପତ୍ତି ସବୁଠାରୁ ବରପ୍ରଦ । କାରଣ ବିଶ୍ୱବଜାରରେ ଟଙ୍କାର ବିନିମୟ ମୂଲ୍ୟ ସବୁଠାରେ ନିମ୍ନରେ ଏବଂ ଦେଶକୁ ଆସୁଥିବା ପୁଞ୍ଜି ନିଜର ଡଲାର ବିନିମୟରେ ଭାରତୀୟ ମୁଦ୍ରାରେ ବହୁ ଲାଭ ପାଇବେ । ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜିର ପ୍ରବେଶ ନିଷ୍ପତ୍ତି ସମ୍ପୂର୍ଣ୍ଣ ଭାବେ ଭାରତୀୟ ଲୋକମାନଙ୍କୁ ଅବଜ୍ଞା ଓ ଅଣଦେଖା କରିଛି । ଏତଦ୍‌ବ୍ୟତୀତ ସେମାନଙ୍କର ବହୁ ଅଧିକ ପୁଞ୍ଜି ମାଧ୍ୟମରେ ଭାରତରେ ପ୍ରବେଶ, ବ୍ୟାଙ୍କମାନଙ୍କୁ ସେମାନଙ୍କ ଆଡ଼କୁ ଋଣ ଦେବା କ୍ଷେତ୍ରରେ ଆକର୍ଷିତ କରିବ ଯାହାର ପରିଣତି ହେବ ଭାରତର କ୍ଷୁଦ୍ର ବ୍ୟବସାୟୀ ଓ ଚାଷୀ ବ୍ୟାଙ୍କରୁ ଋଣ ପାଇବାରେ ଅସମର୍ଥ ହେବେ ।

ସରକାର ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜି ବିନିଯୋଗ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିବା ପରେ, ତାହା ବିରୁଦ୍ଧରେ ଦେଶବ୍ୟାପୀ ଅସନ୍ତୋଷ ଦେଖାଦେଇଛି । ରାଜନୈତିକ ଦଳମାନଙ୍କର ଦାବି ପରେ ସଂସଦରେ ଏହା

ଆଲୋଚିତ ହେଲା । ଭୋଟରେ ସରକାର ଜିତିଲେ । ସରକାର ଜିତିବା ପାଇଁ ପ୍ରଥମେ କ୍ଷେତ୍ର ପ୍ରସ୍ତୁତ କରି ତତ୍‌ପଶ୍ଚାତ୍ ଆଲୋଚନା ଓ ଭୋଟିଂ ପାଇଁ ରାଜି ହୋଇଥିଲେ । ଯେଉଁ କେତେକ ରାଜନୈତିକ ଦଳ ଏହାକୁ ସଂସଦରେ ଆଲୋଚନା କରିବାବେଳେ ବିରୋଧ କଲେ, ସେମାନେ ଭୋଟ ଦେବାବେଳେ ଅନୁପସ୍ଥିତ ରହିଲେ କିମ୍ବା ସପକ୍ଷରେ ଭୋଟ ଦେଲେ ।

ମୋଟ ଉପରେ କହିବାକୁ ଗଲେ, ବିଦେଶୀ ପୁଞ୍ଜି ବିନିଯୋଗ କାର୍ଯ୍ୟସୂଚୀକୁ ସଫଳ ଭାବେ ଲାଗୁ କରିବା ପାଇଁ କୌଶଳ ପ୍ରୟୋଗ କରାଗଲା ଏବଂ ଆମ ଶାସକ ଶ୍ରେଣୀର ନବ୍ୟ-ଉଦାରବାଦ ପ୍ରତି ଅତ୍ୟନ୍ତ ଅନୁରକ୍ତି ଭାରତୀୟ ଲୋକମାନଙ୍କର ଜୀବନ ଅଧିକାର ପ୍ରତି ବିପଦ ସୃଷ୍ଟି କରିବା ସହିତ ବିକାଶକୁ ବାଧାପ୍ରାପ୍ତ କରିବ । ଅନ୍ତର୍ଭୁକ୍ତି ବିକାଶ କେବଳ ଏକ ସ୍ଲୋଗାନ୍; ଏହାର ବାସ୍ତବତା ନାହିଁ । ସାଧାରଣ ଲୋକମାନଙ୍କୁ କ୍ଷମତାଚ୍ୟୁତ କରି, ଅସମାନତାକୁ ବୃଦ୍ଧିକରି, ଲୋକଙ୍କର ଜୀବନ ଓ ଜୀବିକା ଉପରେ ଲାତ୍ ମାରି ଦ୍ରୁତ ବିକାଶ କରିବାର ଆସ୍ଫାଳନ କରିବା ଠାରୁ ଧୀର ଓ ମନ୍ଥର ଗତିରେ ଅର୍ଥନୀତିର ବାସ୍ତବ ବିକାଶ ବରଂ ହଜାରେ ଗୁଣରେ ଶ୍ରେୟସ୍କର ।

ଏହା ବିରୁଦ୍ଧରେ ବ୍ୟାପକ ଗଣ ଆନ୍ଦୋଳନ ଆବଶ୍ୟକ । ଭାରତର ଗାଁଠାରୁ ସହର ପର୍ଯ୍ୟନ୍ତ ସବୁଠାରେ ଏହାକୁ ବିରୋଧ କରାଯିବା ଦରକାର । ଯଦି ଶାସକ ଶ୍ରେଣୀ ଭାବୁଥାନ୍ତି ଯେ ଓ ସେମାନଙ୍କର ଗଭୀର ବିଶ୍ୱାସ ଥାଏ ଯେ କର୍‌ପୋରେଟ୍ ହାଉସ୍‌ମାନଙ୍କର ସେବାକରି ସେମାନେ ପ୍ରଭୂତ ଅର୍ଥବଳ, ବାହୁବଳ, ଗୁଣ୍ଡାବଳ ଏପରିକି ପ୍ରଚାର ବଳ ମାଧ୍ୟମରେ ନିର୍ବାଚନ ଜିତିଯିବେ, ତାକୁ ଭୁଲ ବୋଲି ପ୍ରମାଣିତ କରିବା ପାଇଁ ଜନଶକ୍ତିକୁ ଜାଗ୍ରତ କରିବାକୁ ହେବ ଏବଂ ସଶକ୍ତ ପ୍ରତିରୋଧ ଆନ୍ଦୋଳନ ଗଢ଼ି ତୋଳିବାକୁ ହେବ ।





# ସୌରୀବଂଧୁ କର

ଓଡ଼ିଶା ସାଧାରଣ ସମ୍ପାଦକ

ଏଆଇଟିୟୁସି

ଶ୍ରୀ ସୌରୀବଂଧୁକରଙ୍କ ଦ୍ୱାରା ଲିଖିତ ଓ ପ୍ରକାଶିତ



ମୂଲ୍ୟ : ଟ ୧୦/-